ମନୁ ଖଡ୍ଗରତ୍ନଙ୍କ କୃତ

# କୁଣ୍ଡଳ ଭଙ୍ଗା

## ଓଷାକଥା

( ନୂତନ ମୁଦ୍ରଣ )

ପ୍ରକାଶକ—ଧର୍ମଗ୍ରନ୍ଥ ଭଣ୍ଡାର



ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ

ଆଲିଶାବଜାର, କଟକ-୨

ଫୋନ୍ ନଂ-୨୪୭୯୬

ମୂଲ୍ୟ—ଦୁଇଟଙ୍କା ପଚ୍ଚିଶ ପଇସା ମାତ୍ର

# ଚାଉଳଭଜା ଓଷା କଥା

—o—

## ଶ୍ରୀ ଗଣେଶାୟ ନମଃ ।

ବନ୍ଦଇ ପ୍ରଭୁ ପୀତବାସ । ପଦ୍ମଚରଣେ କରି ଆଶ ॥
ତୁମ୍ଭର ପଦ୍ମପାଦ ଧ୍ୟାୟି । ଚାଉଳଭଜା କଥା କହି ॥
ତୁମ୍ଭ ପାଦେ ଶରଣ ପଶି । ନମଇଁ ନୀଳଗିରି ବାସୀ ॥
ହେ ପ୍ରଭୁ ଆରତ ଭଞ୍ଜନ । ବଧିର ଅନ୍ଧକୁ ଚକ୍ଷୁଦାନ ॥
କାଳ୍ପତେ ସୁଦୟା କରିବ । ମୋ କଣ୍ଠେ ବସି କହିଦେବ ॥
କହିବାକୁ ନୁହେଁ ସୁଜନ । ମୁହିଁ ମୂରୁଖ ପାପୀଜନ ॥
ତେଣୁ ଆଶ୍ରିତ ସେବଗାମୀ । ସେବ ମୁଁ କାଳ୍ପତେ ପୂଛଇ ॥
ସୁଜନେ ଦୋଷ କ୍ଷମାକର । ତୁମ୍ଭ ପାଦେ ଶରଣ ମୋର ॥
ଏଥୁ ଅନ୍ତରେ ଜନେ ଶୁଣ । ଉତ୍କଳ ଦେଶରେଟି ପୁଣ ॥
ଏକ ସାଧବ ଧନେଶ୍ୱର । ସୁବୁଦ୍ଧି ସାହୁ ନାମ ତାର ॥
ଭାରିଯା ନାମ ପୁଣ୍ୟବତୀ । ରୂପକୁ ଶୋଭା ଚନ୍ଦ୍ରକାନ୍ତି ॥
ସାଧବ ବଡ଼ ଧନେଶ୍ୱର । ଯେସନେ କୁବେର ଭଣ୍ଡାର ॥
ତାହାର ଧନ କେବା କହୁ । ଦୟା ଧର୍ମରେ ମାତି ସେହୁ ॥
ତାହାର ସପତ କୁମର । ଏକ ଆରେକ ବଳୀୟାର ॥
ସାଧବ ସପ୍ତ ପୁତ୍ର ଜାଣ । କେ ମୁଖେ କହୁ ତାଙ୍କ ଗୁଣ ॥
ସାତ ପୁଅରେ ସାତ ବୋହୂ । ସମସ୍ତେ ଦୁଲଣା ସବୁହୁଁ ॥
ଷଡ଼ ବୋହୂକୁ କେହି ପୁଣ । ଦେଖି ନ ପାରନ୍ତି ଜାଣ ॥
ସମସ୍ତେ ଏକମନ ହୋଇ । ଗୃହରେ ଚଳୁଥାନ୍ତି ରହି ॥

ସାନକୁ ଦେଖି ନ ପାରନ୍ତି । ବଡ଼ ଅପମାନ କରନ୍ତି ॥
ଅପୁତ୍ରୀ ପୁଣ ସାନ ବୋହୂ । ପୁତ୍ର ପାଇବ ଅବା କାହୁଁ ।୧୦ ॥
ତେଣୁ ବିରସ ତାର ମନ । ଜଣାଣ କରଇ ଶ୍ରୀ ଧର୍ମ ॥
କେବଳ ଗୁରସ୍ତ ତାହାର । ଦେଖି ପାରଇ ନିରନ୍ତର ॥
ଏମନ୍ତେ ବଡ଼ ଦୁଃଖ ସହି । ସେ ସାନ ବୋହୂ ଘରେ ଥାଇ ॥
ଏଥୁ ଅନ୍ତରେ ଜନେ ଶୁଣ । ସାନବୋହୂର କଷ୍ଟମାନ ॥
ଏକଇ ପୁଷ୍ଟବର୍ଣ୍ଣ ଜାଣ । କର୍କି ଗାଡ଼ିଆ ତାର ନାମ ॥
ତର୍ତ୍ତିକ ସ୍ନାନ କରି ଯାଇ । ସୂର୍ଯ୍ୟଙ୍କୁ ଜଳ ସେ ଦଅଇ ॥
ହେଧର୍ମ ମୋର ଦୁଃଖ ଘେନ । ଶ୍ୱଶୁର ହୁଅନ୍ତୁ ପଧାନ ॥
ଶାଶୁ ମୋ ପଧାଣି ହେଉ । ଏ ଆଜ୍ଞା ଦେଉ ମହାବାହୁ ॥
ଷଡ଼ ଯେ ଦେଢ଼ଶୁର ପୁଣ । ଏମାନେ ହୁଅନ୍ତୁ ପଧାନ ॥
ମୋ ଷଡ଼ ଜାଆ ପଧାଣୀ । ହୁଅନ୍ତୁ ଝୁରୁଛି ଦଇନ ॥
କନକ ଦେଶର ରାଜନ । ଗୁରସ୍ତ ହୁଅନ୍ତୁ ମୋ ପୁଣ ॥
ପୁତ୍ର ଗୋବନ୍ଦଚନ୍ଦ୍ର ହେଉ । ପୁସ୍ତକ ଧରି ଗୀତ ଗାଉ ॥
ଏ ବାଞ୍ଛା ମନରେ ବିଚାରି । ଧର୍ମଙ୍କୁ କରଇ ଗୁହାରି ॥
ଏମନ୍ତେ ପ୍ରତିଦିନ କରେ । ଦୁଃଖିତ ହୋଇଣ ମନରେ ॥
ଏ ବାଣୀ ଷଡ଼ଯାଆ ଶୁଣି । ଶାଶୁ ଆଗେ କହନ୍ତି ବାଣୀ ॥
ସ୍ନାନକୁ ସାନ ବୋହୂ ଗଲା । ଧର୍ମଙ୍କୁ ପାଣି ସେ ଟେକିଲା ॥
ବୋଇଲା ଧର୍ମ ନିରଞ୍ଜନ । ଶଶୁର ହୁଅନ୍ତୁଟି ପାଣ ॥
ଶାଶୁ ମୋ ପାଲୁଣୀ ହୋଇବେ । ଦେଢ଼ଶୁର ଚଉକ ଦେବେ ॥
ଗୁରସ୍ତ କନକ ରାଜନ । ପୁତ୍ର ଗୋବନ୍ଦଚନ୍ଦ୍ର ନାମ ॥
ପାଟବଣୀ ହୋଇବ ମୁହିଁ । ଧର୍ମଙ୍କୁ ଡାକେ ଏହା କହି ॥
ଆମ୍ଭର ମନ ସେ ପାଞ୍ଚୁଛି । ବୁଝିଣ ଦଣ୍ଡ ଦଅ ବାଛି ॥
ଏମନ୍ତେ ଷଡ଼ ବୋହୂ ପୁଣି । ଶାଶୁଙ୍କୁ ବୋଲୁଛନ୍ତି ବାଣୀ ॥
ତା ଶୁଣି ଶାଶୁ କୋପଭରେ । ସାନ ବୋହୂକୁ ଗଞ୍ଜନରେ ॥

ଡାକଣ ବଚନ କହଇ । ମୋ ଘରୁ ଯାଅ ବେଗ ହୋଇ ॥
ଡାଆଣୀ ଡାକୁଣୀ ବୋଲଇ । ଭର୍ତ୍ସନା କରି ଗାଳି ଦେଇ ॥
ତା ଶୁଣି ସାନବୋହୂ କହ । କହୁଛନ୍ତି ମୋର ଦୋଷ ନାହିଁ ॥
ଆଲ ମୁଁ କହୁଅଛୁ ପୁଣ । ସବୁ କହୁଛୁ ଏବେ ଶୁଣ ॥
ଯାହା ସେ ଆଦ୍ୟରେ କହୁଛୁ । ସତ୍ୟରେ କହେ ତାହା ବାଛୁ ॥
ତା ଶୁଣି ଶାଶୂ ନ ମାନଇ । ଅନେକ ଗାଳି ସେ ଦଅଇ ॥
ବହୁତ କନ୍ଦଳ ହୋଇଲା । ସେବଧନ ଏକରୂପେ ଗଲା ॥
ତା ଶୁଣି ତାହାର ଗୃହସ୍ତ । ମନରେ ବଢ଼ିବାକୁ ସତ ॥
ଆରଦ୍ଦିନ ସକାଳୁ ଯାଇ । ପୋଖରୀ କୂଳେ ବସିଥାଇ ॥
ଏକ ପାଟଳି ବୃକ୍ଷ ଥିଲା । ତହିଁ ଉପରେ ସେ ବସିଲା ॥
ସପତ ବୋହୂମାନେ ଗଲେ । ପୋଖରୀ ଭିତରେ ପଶିଲେ ॥
ସ୍ନାହାନ ସାରି ଯେ ଯାହାର । ତର୍ପଣ ହୋଇଲେ ବାହାର ॥
ଏମନ୍ତ ସମୟରେ ତହିଁ । ସାନବୋହୂ ଅର୍ଘ୍ୟ ଦଅଇ ॥
କାର୍କି ଗାଡ଼ୁଆ ଜଳ ଘେନ । ଧର୍ମକୁ ଡାକ କହେ ପୁଣି ॥
ମୋହର ନିବେଦନ ଘେନ । ଶ୍ୱଶୁର ହୋଇବେ ପଧାନ ॥
ଶାଶୁ ମୋ ପଧାଣୀ ହେଉ । ଏ ବାଞ୍ଛା ମୋର ପୂର୍ଣ୍ଣ ହେଉ ॥
ଷଡ଼ ଦେଢ଼ଶୁର ପଧାନ । ଏକଥା ହେଉ ବଦ୍ୟମାନ ॥
ଜାଆ ମୋ ସାଧବାଣୀ ହେବେ । ଏ କଥା ଘେନ ମୋର ଭାବେ ॥
କନକ ଦେଶର ରାଜନ । ଗୃହସ୍ତ ହେଉ ମୋର ପୁଣ ॥
ପୁଅ ଗୌବନ୍ଦଚନ୍ଦ୍ର ହେଉ । ପୁସ୍ତକ ଧରି ଗୀତ ଗାଉ ॥
ମୁହିଁ ହୋଇବି ପାଟରାଣୀ । ଧନପୁ ଘେନ ଭଜମଣି ॥
ଏମନ୍ତ ବଚନ କହିଲା । ସପ୍ତ ଅଞ୍ଜୋଳି ଜଳ ଦେଲା ॥
ଏମନ୍ତେ ହୋଇଲା ବାହାର । ପ୍ରବେଶ ହୋଇଲା ଗୃହର ॥
ତା ପଛେ ଗୃହସ୍ତ ଅଇଲା । ମନ୍ଦିରେ ପ୍ରବେଶ ହୋଇଲା ॥
ଏମନ୍ତେ ଷଡ଼ବୋହୂ ପୁଣି । ଶାଶୁକୁ ବୋଲୁଛନ୍ତି ବାଣୀ ॥

କାଲି କଥାକୁ ମିଛ କଲ । ଆଜ ସେପରି ଜଳ ଦେଲ ॥
ତା ଶୁଣି ସାନପୁଅ କହି । ସବୁ ଦେଖିଛୁ ଆଜ ମୁହିଁ ॥
ତା ମୁଖେ କହୁଅଛୁ ଯାହା । ସବୁ ଯେ ସତ୍ୟ ଅଟେ ତାହା ॥
ତୁମ୍ଭେ ଲେ କହୁଅଛ ମିଛ । ଏ କଥା ଅଟଇ ପ୍ରତ୍ୟକ୍ଷ ॥
ସତ୍ୟକୁ ମିଥ୍ୟାକରି ମଣ । ଦଣ୍ଡ ଦେଉଛ ଅକାରଣ ॥
ପାଟଳି ବୃକ୍ଷପରେ ଥାଇ । ସବୁ ଦେଖିଛୁ ଆଜ ମୁହିଁ ॥
ପୁତ୍ର ମୁଖରୁ ଏହା ଶୁଣି । ସାଧବ କହୁଅଛୁ ବାଣୀ ॥
ସତ ମିଛକୁ ବୁଝି ମନେ । ସନ୍ତୋଷ କରେ ଜଣେ ଜଣେ ॥
ନନ୍ଦନ ସବୁ ଚଳ ନାଶ । ସାନ ବୋହୂ ମନେ ହରଷ ॥
ଏମନ୍ତେ ରବି ଅସ୍ତ ହେଲ । ଅନ୍ଧାର ତିମିର ଘୋଟିଲ ॥
ଏଥୁ ଅନ୍ତରେ ଜନେ ଶୁଣ । ସାନବୋହୂର କଷ୍ଟମାନ ॥
ହାଣ୍ଡି ଧୂଆ ବଧି ସାରିଲା । ପାଣି ଆଣିବ ବୋଲି ଗଲା ॥
ନେତାଇ ଧୋବଣୀକ ସେତୁ । ବାଟେ ଦେଖିଲା ଯାଉଁ ଯାଉଁ ॥
ଧୋବଣୀ ଦେଖି ପଚାରଇ । ସାଧବ ବୋହୂ ଅଟୁ ତୁହି ॥
ମୁଖ ତୋ ହୋଇଛୁ ମଳିନ । ହୋଇଛୁ ବଡ଼ାଇ ମଳିନ ॥
ତା ଶୁଣି ବୋଲଇ ବଚନ । ମୋ କର୍ମ ବଡ଼ ହୀନମାନ ॥
ଅଜା ମଉଳା ଆଦିକରି । ମତେ କେହିବି ଦେଖି ନ ପାରି ॥
ଅତି ଦୁଃଖରେ ଦୁଃଖୀ ହୋଇ । ସେ ଘରେ ଚଳୁଅଛୁ ମୁହିଁ ॥
ପୁତ୍ର ଦୁହିତା କିଛି ନାହିଁ । ତାହା ପାଇବ ମୁହିଁ କାହିଁ ॥
ଏମନ୍ତେ କହୁତ କହିଲା । ସମସ୍ତ ନେତାଇ ଶୁଣିଲା ॥
ତା ଦେଖି ନେତାଇ ଧୋବଣୀ । ତାହାକୁ କହୁଅଛୁ ବାଣୀ ॥
ମୋର ବଚନ କାନେ ଘେନ । ଯେମନ୍ତେ ପାଇବୁ ନନ୍ଦନ ॥
କହ ତୁ ବଧି କଥାମାନ । ପୁତ୍ରହିଁ ଧନ ନାହିଁ ପୁଣ ॥
ଷଷ୍ଠୀ ଦେବୀଙ୍କ ଓଷା କରି । ଖ୍ୟାତ ହୋଇଛୁ ଏ ସଂସାରି ॥
ସାଧବ ବୋହୂ ପଚାରଇ । ପୂର୍ବେ ଏ ଓଷା କେ କରଇ ॥

କାହୁଁ ଏ ହୋଇଛୁ ବିଖ୍ୟାତ । ମାଗୋ ନେତାଇ କହ ସତ ॥
ନେତାଇ ଧୋବଣୀ କହଇ । ଶୁଣ ତୁ ସ୍ଥିରମନ ହୋଇ ॥
ଖାର ନିମନ୍ତେ ଏକଦିନେ । ଗଲି ମୁଁ ଗହନ କାନନେ ॥
ବନସ୍ତ ମଧ୍ୟରେଟି ପୁଣି । ଅଛଇ ଏକ ପୁଷ୍କରଣୀ ॥
ତହିଁରେ ଦେବକନ୍ୟା ଆସି । ସ୍ନାନ କରନ୍ତି ଜଳେ ପଶି ॥
ଆନନ୍ଦେ ହୁଳହୁଳି ଦେଇ । ପ୍ରେମ ଖେଳରେ ମତ୍ତ ହୋଇ ॥
ତା ଶୁଣି ଖେଳ ହୋଇଗଲି । ତାଙ୍କ ପାଖରେ ଯାଇ ମିଳି ॥
ଦେଖିଣ କଲି ନମସ୍କାର । ମସ୍ତକେ ଯୋଡ଼ି ବେନିକର ॥
ମୋତେ ଦେଖିଣ ସେ ପଚାରି । କାହୁଁ ଅଇଲୁ ତୁହି ନାରୀ ॥
ମୁଁ ତାଙ୍କୁ କହଇ ବଚନ । ଶୁଣ ହେ ଦେବକନ୍ୟା ମାନ ॥
ମୋ ନାମ ନେତାଇ ଧୋବଣୀ । ଅଇଲି ତୁମ୍ଭ ନାମ ଶୁଣି ॥
ତୁମ୍ଭଙ୍କୁ ଆଜ ମୁଁ ଦେଖିଲି । ସକଳ ପାତକ ନାଶିଲି ॥
କଥାଏ ପଚାରୁଛି ମୁହିଁ । ଏଠାରେ ସ୍ନାହ ନ କର୍ମ ଇଁ ॥
ଆନନ୍ଦେ ହୁଳହୁଳି ଦିଅ । ମାୟା ନ କରି ସତ କହ ॥
ତା ଶୁଣି ଦେବକନ୍ୟା ଗଣ । ଶ୍ରଦ୍ଧାରେ କହନ୍ତି ବଚନ ॥
ଷଠୀ ଦେବୀଙ୍କ ଓଷା ଜାଣ । ଗୁଜୁଳଭଜା ନାମ ପୁଣ ॥
ଶୁଣ ଏ ଓଷା ବିଧି କଥା । ପୂର୍ବରୁ ଯେମନ୍ତ ବ୍ୟବସ୍ଥା ॥
ଆଶ୍ୱିନ କୃଷ୍ଣପକ୍ଷ ମାନ । ଆଦ୍ୟେ ବୁଧବାରଟି ପୁଣ ॥
ସେଦିନ ଏ ଓଷା କରିବ । ତହିଁରେ ଯେତେ ବିଧି ଥିବ ॥
ଅଟିକା ଗୋଟିକରେ ନେଇ । ଗୁଜୁଳ ଭଜିବଟି ତହିଁ ॥
ବଟ ଅର୍ଦ୍ଧେ ନଶି ଘରରେ । ପୂଜିବ ଆପଣା ଗୃହରେ ॥
ଦୁଙ୍କାମାଟି ଖଣ୍ଡେ ସ୍ଥାପିବ । ଅପୂଲା ଡାକ ନିର୍ମାଇବ ॥
ଗୋଟିଏ ଶିଳପୁଆ ନେଇ । ସିନ୍ଦୂର କଜ୍ଜଳଟି ଦେଇ ॥
ନାନାଦି ଫଳ ପୁଷ୍ପ ଆଣି । ମଣ୍ଡନ କରିବଟି ପୁଣି ॥
କଜଳପାତିଟିଏ ନେଇ । ସ୍ଥାପନ କରିବ ସେଠାଇଁ ॥

ଏ ଆଦି ସମସ୍ତ ସ୍ଥାପିବ । ଷଠୀ ଦେବୀଙ୍କି କରି ଭାବ ॥
ପାଞ୍ଚଖିଅ ସୂତା କରିବ । ପାଞ୍ଚଟି ଗଣ୍ଠି ପକାଇବ ॥
ଷଠୀ ଦେବୀଙ୍କୁ ମନେ ଭାବ । ଫୁଲଚନ୍ଦନ ମୁଖରେ ଦବ ॥
କହିବା ଶୁଣ ତାର ଭାବ । ମାଣ କ ଗଉଣୀ ବା ଦେବ ॥
ଧୋଇଣ ତାହା ଶୁଖାଇବ । ମନ ସନ୍ତୋଷରେ ଭଜିବ ॥
ଚୁଲ୍ଲିରେ ଗୁଡ଼ଜଳ ପୂରାଇ । ଦୁଧ ମହୁ ଘିଅ ଗୋଳାଇ ॥
ଷଠୀ ଦେବୀଙ୍କ ନାମ ଧରି । ତାହାଙ୍କୁ ନଇବେଦ୍ୟ କରି ॥
ଅନେକ ଦଣ୍ଡବତ ହେବ । ହସ୍ତରେ ସୂତକୁ ବାନ୍ଧିବ ॥
ଏମନ୍ତେ ଏ ଓଷା କରିବ । ନିର୍ମଳ ଚିତ୍ତେ କରି ଭାବ ॥
ପାଞ୍ଚ ସାଲରେ ପୂର୍ଣ୍ଣ ହୋଇ । ତାର ବିଧାନ ଶୁଣ ଭାଇ ॥
ପାଞ୍ଚଟି ମଣ୍ଡା ନିର୍ମାଣିବ । ନାନାଦି ପୁରି ପୂରାଇବ ॥
ଯାହାକ ମିଳିବ ଯେମନ୍ତେ । କରିବ ସେହି ବିଧିମତେ ॥
ପୂର୍ବରୁ କହିଅଛୁ ଏହା । କରିବ ବିଧିମତେ ତାହା ॥
ଏମନ୍ତେ ପୂଜା ବିଧି ସାରି । ମନ ସନ୍ତୋଷରେ ଯେ କରି ॥
ଷଠୀ ଦେବୀ ବୋଲି ପୂଜିବ । ନିର୍ମଳ ଚିତ୍ତେ କରି ଭାବ ॥
ଆତଙ୍କେ ଫୁଲଚନ୍ଦନ ଦେଇ । ସୁଖରେ ରଜନୀ ପୁହାଇ ॥
ପ୍ରଭାତୁ ଉଠି ବେଗେ ଯିବ । ପୁଷ୍ପକୁ ଜଳରେ ମେଲିବ ॥
ସୂତକୁ ଜଳରେ ଭସାଇ । ତିନିବାର ଦଣ୍ଡବତ ହୋଇ ॥
ଷଠୀ ଦେବୀଙ୍କୁ ନମସ୍କାରି । କରିବ ଆପଣା ଦୁଦର ॥
ଷଠୀ ଦେବୀଙ୍କ ପ୍ରସାଦରୁ । ଲକ୍ଷ୍ମୀ ଯେ ନ ଛାଡ଼ଇ ଘରୁ ॥
ଅପୁତ୍ରୀ ପୁତ୍ରଦାନ ପାଇ । ଦରିଦ୍ରି ତାକୁ ନ ପଡ଼ଇ ॥
ପୁତ୍ର କାମନା ଓଷା ଏହି । ନିର୍ମଳ ଚିତ୍ତ କଲେ ଯାଇ ॥
ଓଷାର ବିଧି ଶେଷ ଶୁଣି । ଶୁଣ ଗୋ ନେତାଇ ଧୋବଣୀ ॥
ଶୁଣି ମୁଁ ସାନନ୍ଦ ହୋଇଲି । ତାହାଙ୍କ ଚରଣେ ପଡ଼ିଲି ॥
ସେ ମତେ ଏମନ୍ତ କହିଲେ । ତକ୍ଷଣେ ସ୍ୱର୍ଗ ପୁର ଗଲେ ॥

ଚତୁର୍ଥ ବାହୁଡ଼ି ମୁଁ ଅଇଲି । ଆପଣା ଗୃହରେ ମିଳିଲି ॥
ପୂର୍ବେ ମୁଁ ଏହା ଥିଲି ଶୁଣି । କହିଲି ଠିକେ ଠିକେ ପୁଣି ॥
ତୁ ଏବେ ଏହି ଓଷା କର । ନିଷ୍ଟେ ପାଇବୁ କୁମର ॥
ସାଜ ବୋଉ ଯେ ଏହା ଶୁଣି । ତାର ମନରେ ହୋଏ ଗୁଣି ॥
ଶୁଣ ଗୋ ନେତାଇ ଧୋବଣୀ । କଲ୍ୟାଣ କର ମୋତେ ପୁଣି ॥
ଏ ଓଷା ନିଷ୍ଟେ କରିବି । ତୁମ୍ଭ ବଚନ ମୁଁ ପାଳିବି ॥
ଜୀବନ ଥିବାଯାଏ ମୋର । କରିବି ସତ୍ୟ ତିନିବାର ॥
ଏମନ୍ତେ କୁହାକୁହି ହୋଇ । ଯେ ଯାହା ମନ୍ଦିରକୁ ଯାଇ ॥
ସାଧବ ବୋଉ ଚଳିଗଲା । ଆପଣା ମନ୍ଦିରେ ମିଳିଲା ॥
ଯୋଗେ ଯେଉଁ ବୁଧବାର । ଆଶ୍ୱିନ ମାସ ଯେ ମୁକର ॥
କରିବି ଏହି ଓଷା ପୁଣି । କହିଛି ନେତାଇ ଧୋବଣୀ ॥
ଯେରୂପେ କହିଥିଲା ସେହି । ସମସ୍ତ ବିଧି ସେ କରଇ ॥
ଏମନ୍ତେ ଘଟ ଅର୍ଘ ଦେଲା । ଗୁରୁସ୍ତ ଆଗରେ କହିଲା ॥
ଶୁଣି ସେ ସନ୍ତୋଷ ହୋଇଲା । ଏ ଓଷା କର ତୁ ବୋଇଲା ॥
ଷଠୀ ଦେବୀଙ୍କୁ ସୁମରିଣ । ଚତୁର୍ଥେ ସେ ଓଷା କରି ପୁଣ ॥
ଭକ୍ତିରେ ଓର୍ଦ୍ଧ ଓର ହୋଇ । ଏ ଓଷା ଲୁଚାଇ କରଇ ॥
ଏମନ୍ତ ବହୁ ଦିନ ଗଲା । ସୁତ ପାଳି ଆସି ପଡ଼ିଲା ॥
ସେ ଦିନ ଏହି ବିଧିମତେ । ପୂଜୁଛି ଘଟ ଅର୍ଘ ଗତେ ॥
ତାହାର ଶାଶୁ ଯାଇ ଆସି । ଦେଖିଲେ ପୂଜୁଅଛି ବସି ॥
ଶାଶୁ ଆଗରେ ସେ କହନ୍ତି । ଆସ ଗୋ ଦେଖିବ ବୋଇଲେ ॥
ଗମ୍ଭୀର ଘରେ ଦେଲି ଘୁଞ୍ଚି । ଅତି ହରଷେ ଶାଶୁ ଯାଇ ॥
ବୋଇଲା ବୋହୂଟିଅ ଶୁଣ । ଉପାସ କରୁଅଛୁ ପୁଣ ॥
ନାନା ଉପାୟ ମାନ କରୁ । ଆମ୍ଭର ନାଶ କୁ ବଞ୍ଚୁଛୁ ॥
ସବ ପାଇଲେ ଶତ୍ରୁଙ୍କ ପରି । ଯାହା କରିବ ରହ ଶୁଣି ॥
ଏମନ୍ତ ବାଣୀ ସେ ଶୁଣିଲି । କାନରେ ବଚନ ବୋଇଲି ॥

ଜଗାତ୍ନ କରୁନାର୍ଦ୍ଧି ମୂର୍ତ୍ତି । ଓଷା ପୂଜୁଛୁ ଘରେ ରହି ॥
କହିଲେ ନେଡାଇ ଧୋବଣୀ । ଏ ଓଷାକୁ କର ତୁହ୍ମେ ପୁଣି ॥
ସୁଖ ହୋଇବ ନଷ୍ଟେ ଚୋର । ଏହି ଓଷା କୁ ବେଗେ କର ॥
ତାଠାରୁ ଏମନ୍ତ ଶୁଣିଲି । ସୁବ୍ର ପାଳ ଏ ଓଷା କଲି ॥
ତା ଶୁଣି ଶାଶୁ ଯେ କହଇ । ଏ ଓଷା ବିଧି କହ ଫେଇ ॥
ସମସ୍ତ ବୁଝାଇ କହିଲି । ଶାଶୁ ତା ଶୁଣି ତୋଷ ହେଲି ॥
ଯେବେ ତୁ ଏହି ଓଷା କଲୁ । କେଜିର୍ଦ୍ଧୁ କିମ୍ପା ନ କହିଲୁ ॥
ଏବେ ତୁ ଶୁଣ ମୋ ବଚନ । ପୂରନ୍ତା ପାଳ ଓଷାଦନ ॥
ସମସ୍ତେ ଏ ଓଷା କରିବ । ବିଧି ମତରେ ନିର୍ମାଣିବ ॥
ଏମନ୍ତେ ସାତଦିନ ଗଲା । ପୂରନ୍ତାପାଳ ଓଷା ହେଲା ॥
ବଡ଼ ବୋହୂଙ୍କୁ ଶାଶୁ ଦେନ । କଲା ସେ ଓଷାବିଧି ପୁଣି ॥
ସାନ ବୋହୂକୁ ନ ମିଶାଇ । ଓଷାକୁ ଆରମ୍ଭିଲେ ଯାଇ ॥
ନଟିକାଜ କାନ୍ଥ ଗହନେ । କଦଳୀ ଆଣିଲେ ବହନେ ॥
ଛେନା କର୍ପୂର ଗୁଡ଼ ଘିଅ । ଧୂପ ଦୀପ ଆଦି ବିଷୟ ॥
ସରୁ ସୁଜିକ କଲେ ଅଠା । ଅନେକ କଲେ କୁଠା ବଠା ॥
ସମସ୍ତେ ଏହିରୁପେ କଲେ । ଆନନ୍ଦେ ଓଷା ଆରମ୍ଭିଲେ ॥
ସାନ ବୋହୂକୁ ହିଂସା ବହି । ସଙ୍ଗତେ ତାକୁ ନ ମିଶାଇ ॥
ସେ ବେହୂ ମନେ ବିସ୍ମରିଲା । ଦଇବ ମୋତେ ଏହା କଲା ॥
ନଡ଼ିଆ ଖୋଳିପା ଆଣିଲା । କଦଳୀ ଚ୍ଛେପା ଗୋଟାଇଲା ॥
ଚୂନାକୁଟାର କଣିକୁଣ୍ଡା । ତାହାକୁ ଆଣି କଲା ମଣ୍ଡା ॥
ଷଠୀ ଦେବୀଙ୍କୁ ମନେ ଧ୍ୟାୟି । ଚିତ୍ତୁ ମନରେ କଲା ସେହି ॥
ଯେଣୁ ସେ ଷଠୀଙ୍କି ଭାବିଲା । ଅମୃତ ପାକମଣ୍ଡା ହେଲା ॥
ଏମନ୍ତେ ଓଷାବିଧି ସାରି । ବ୍ରତ ଅର୍ଦ୍ଧରେ ପୂଜା ସାରି ॥
ସମସ୍ତେ ଓଷାବିଧି କଲେ । ଶୀତଳ ମଣୋହି ସାରିଲେ ॥
ଓଷା ପ୍ରସାଦ ଦେନ ଆସି । କୁଟୁମ୍ବଯାକ ଦେଇ ବସି ॥

ଭୋଜନ କରଣ ବସିଲେ । ଯେ ସବୁଯାକ ପରଷିଲେ ॥
ଭୁଞ୍ଜିଲେ ଜଣ ଜଣ କରି । ସ୍ୱାଦ ବୁଝିଲେ ଖଣ୍ଡି ବାରି ॥
ସ୍ୱାଦ ତନ୍ତିରେ ନାହିଁ କିଛି । ସମସ୍ତେ ଖାଇ କଲେ ଛି ଛି ॥
ଧାର୍ମିକମାନେ କଲେ ପହୁଁ । ସ୍ୱାଦ ସେ ଲାଗିବଟି କାହୁଁ ॥
ସାନବୋହୂ ପ୍ରସାଦ ନେଲା । ସମସ୍ତଙ୍କୁ ସେ ପରଷିଲା ॥
ସମସ୍ତେ ଭୁଞ୍ଜିଲେ ପ୍ରସାଦ । ମନରେ ହୋଇଲେ ଆନନ୍ଦ ॥
ଛେନା କର୍ପୂର ଆଣ୍ଡ ଯେତେ । ନଡ଼ଆ କଦଳୀ ସହିତେ ॥
ମଣ୍ଡା ଭିତରୁ ଏତେ ପୁର । ଘ୍ରାଙ୍ଗିଣ କଲେ ତା ବାହାର ॥
ସନ୍ତୋଷେ ଭୋଜନ ସାରିଲେ । ବହୁତ ପ୍ରଶଂସାହିଁ କଲେ ॥
ଭୋଜନ ଆଚମନ ସାରି । ସମସ୍ତେ ଧନ୍ୟ ଧନ୍ୟ କରି ॥
ଷଠିଙ୍କି କରିବାରୁ ତତ୍ତ୍ୱ । ତା ଦ୍ରବ୍ୟ ହୋଇଲା ଅମୃତ ॥
ଜଗତ ବସ୍ତୁ ଯେ ଅଟଇ । ଜଗତେ ସକଳ ମିଳଇ ॥
ଏଥୁ ଅନ୍ତରେ କହୁ ଶୁଣ । ସାଧବ ବୋହୂ କଷ୍ଟମାନ ॥
ବଡ଼ ବୋହୂଙ୍କୁ ଶାଶୁ ଡାକି । ବଚନ କହଇ ଆଶ୍ୱାସି ॥
ସାନବୋହୂର ଗୁଣମାନ । କହିଲେ ନ ସରେ ଗୋ ପୁଣ ॥
*ଆମ୍ଭଙ୍କୁ ଉପାୟ ସେ କରି । ମୋ ଦ୍ରବ୍ୟ କଲା ଏତେସରି ॥
ତାର ଅମୃତ ପାକ ହେଲା । ଆମ୍ଭରି ଦ୍ରବ୍ୟ ନାଶ କଲା ॥
ଏମନ୍ତେ ବତ୍ସର ହୋଇଲା । ତାକୁ ଅନେକ ଗାଳି ଦେଲା ॥
ବୋଇଲା ସଣ୍ଡ ଝିଅ ଶୁଣ । ଉପାୟ କରୁଅଛୁ ରହ ॥
ନାନା: ଔଷଧ ଗୁଣ୍ଡ ଜାଣି । ନାଶ କରୁଛୁ ଲେ ଡାଆଣୀ ॥
ଔଷଧ କରିବାରୁ ଗୁଣ୍ଡ । ତୋ ପାକ ଏମନ୍ତ ହୁଅଇ ॥
ସାନବୋହୂ ଏ ବାଣୀ ଶୁଣି । କାତରେ କହୁଅଛି ବାଣୀ ॥
ମୁହିଁ କରନାହିଁ ଉପାୟ । ଷଠୀଦେବୀ ମୋହର ସାହ୍ୟ ॥
ତାଙ୍କ ଦୟାରୁ ସବୁ ହୁଏ । ନ ବୁଝି ଦଣ୍ଡ ଦଅ ମାଏ ॥
ଅନେକ କହିଲା ବୁଝାଇ । ଡରେ ପାଦତଳେ ପଡ଼ଇ ॥

ଷଠୀଦେବୀଙ୍କୁ କଲା ଧାନ । ହୃଦରେ କଲା ନବେଦନ ॥
ମୋ କର୍ମେ ଲେଖାଥିଲା ଯନ୍ତ୍ରି । ଆନ କରିବ କେନ୍ତୁ ଚନ୍ତି ॥
ତୋ ବିନୁ କିଛି ନ ଜାଣଇ । ଗୁହାରି ଶୁଣ ମୋର ଭୁଣ୍ଟ ॥
ଷଠୀଦେବୀଙ୍କୁ ସ୍ତୁତି କଲା । ଅନେକ ବିନସ୍ତି ହୋଇଲା ॥
ଏଣୁ ଅନ୍ତରେ ଶାଶୁ ତୋର । ଷଣ୍ଢବୋହୂ ଯେନ ସଙ୍ଗର ॥
ନାନା ଭର୍ତ୍ସନେ ଦେଲା ଗାଳି । ଅନେକ ଲଗାଇଲା କଳି ॥
ବାଞ୍ଛା କର୍କଟୀ ବୋଲି କଣ୍ଟ । ଆଣ୍ଟୁ କୁଡ଼ ବନ୍ଧ୍ୟା ଟୋ ଭୁଣ୍ଟ ॥
ଅନେକ ଯନ୍ତ୍ରଂ ଦେଲେ ଗାଳି । ବୁଢ଼ା ସାଧବ ଆସି ମିଳି ॥
ସମସ୍ତ ବୁଝାମଣା କଲା । ଜଣଜଣକେ ବୋଧ ଦେଲା ॥
ସମସ୍ତେ ସେହି କଥା ମାନି । ଯେ ଯାହାର ହୋଇଲେ ଭିନ୍ନ ॥
ସାନବୋହୂ ଯେ ଗଲା ଚଳି । ଆପଣା ନିଜଗୃହେ ମିଳି ॥
ଅତି ଦୁଃଖେ ନିଦ୍ରା ଯାଇଛି । ସ୍ୱପ୍ନରେ ଷଠୀ କହୁଛନ୍ତି ॥
କିଛି ନ ଭାଳ ତୋର ମନେ । ତୋ କଷ୍ଟ ଯିବ ଅଳ୍ପଦିନେ ॥
ଏମନ୍ତ କହିଗଲେ ଦେବୀ । ସାଧବ ବୋହୂ ମନେ ଭାବି ॥
ମନରେ ଆନନ୍ଦ ହୋଇଲା । କାହାରି ଆଗେ ନ କହିଲା ॥
ଏମନ୍ତେ ପାହିଲା ରଜନୀ । ଯେ ଯାହା କ୍ରିୟା କଲେ ପୁଣି ॥
ଷଠୀ ଦେବୀଙ୍କ ପାଦ ଧ୍ୟାୟି । ମନ୍ଦୁ ଖଡ଼ୀ ରଚନ କହି ॥
ଗୁରୁ ଦୟାରୁ ଲେଖିଲଇଁ । ମୋହର କିଛି ବୋଧ ନାହିଁ ॥
ସାଦରେ କ୍ଷମା କର ଦୋଷ । ସୁଜନ ପାଦେ ମୋର ଆଶ ॥

—*—

## ଭାରତ ବୋଲିରେ ଗାଇବ

ଏଥୁ ଅନନ୍ତରେ କହୁଛି ଶୁଣ । ସାଧବ ସାନବୋହୂ କଷ୍ଟମାନ ॥
ଅତି ଦୁଃଖ ସହି କଷ୍ଟରେ ଥାଇ । ଦିନେ ତା ଗୁରୁସ୍ତ ବସି କହଇ ॥
ଅତି କଷ୍ଟ ପାଇ ଗୃହରେ ଥିବା । ଏଣୁ ଯାଇ ଅନ୍ୟସ୍ଥାନେ ମରିବା ॥

ଆମ୍ଭଙ୍କୁ ଦେଖି ନ ପାରନ୍ତି କେହି । ଆମ୍ଭ ଜୀବନ ରଖି ନଯୋଗାଇ ॥
ଏତେକହି ମନେମନ୍ୟୋଧ ହୋଇଲ । ଧର୍ମ ସୁମରି ବାହାର ହୋଇଲ ॥
ନଜ ପତ୍ନୀକ ଘେନ ସଙ୍ଗତର । ଆପଣା ଗୃହରୁ ହେଲା ବାହାର ॥
ମାତାପିତାଙ୍କୁ ନମସ୍କାର କଲେ । ବୋହୂମାନଙ୍କୁ ଅନେକ କହିଲେ ॥
ଭାଇମାନଙ୍କୁ ଦଣ୍ଡବତ ମୋର । ବୋଇଲେ ଯାଉଅଛୁ ଦେଶାନ୍ତର ॥
ଭଉଯାଙ୍କୁ ସଙ୍ଗେ ନଜର ମୁହିଁ । କପାଳେ ଲେଖିଛା ଅଛୁଟି ହୋଇ ॥
ଭୁଞ୍ଜିବୁ ଆମ୍ଭର କପାଳ କଥା । ଏତେକହିଣ ନୁଆଇଁଲେ ମଥା ॥
ଏଥି ଅନେକ ଦଣ୍ଡବତ କଲେ । ଧର୍ମଙ୍କୁ ସୁମରି ବାହାର ହେଲେ ॥
ତାଦେଖି ସମସ୍ତେ ହେଲେ ଆନନ୍ଦ । କାହାର ମନରେ ନାହିଁ ବିଷାଦ ॥
କେ ବୋଲେ ଏକଥା ହୋଇଲା ଭଲ । ଆମ୍ଭମାନଙ୍କଠାରୁ ଗଲା ସଲ ॥
ଏମନ୍ତେ ଅନେକ ଭଦ୍ର ନା କର । ତାଙ୍କ ଅମଙ୍ଗଳ ବାଞ୍ଛି ସୁମର ॥
ସବୁରି ମନବାଞ୍ଛା ହେଲା ପୂର୍ଣ୍ଣ । ଗୃହରେ ରହିଲେ ଆନନ୍ଦ ମନ ॥
ବୃଦ୍ଧା ସାଧବର ବିରସ ମନ । ସେ ନପୁଅଙ୍କୁ ଯେ କରେ କଲ୍ୟାଣ ॥
ଏଣେ ଫଳିବାକୁ ଗୃହରୁ ଗଲୁ । ଉତ୍ତମ ଯମ ତୋ କପାଳେ ମିଳୁ ॥
ଏହା କହି ହୃଦେ କଲ୍ୟାଣ କଲା । ମାଳଦାତା କଥା ନଷ୍ଟେ ରହିଲା ॥
ସୁବୁଦ୍ଧି ସାଧୁ ଯେ କୁଟୁମ୍ବ ଘେନ । ଆପଣା ଗୃହରେ ରହିଲ ପୁଣି ॥
ଏଥି ଅନ୍ୟାନ୍ୟ କଥା ଶୁଣ ଭଲେ । ତେଣେପୁଅବୋହୂ ଅବସ୍ଥା ହେଲେ
ପଥରେ ବୁଲନ୍ତେ ଦେଖ ପରଣୀ । ଆହା ଦଇବ ଏହା କଲୁ ଆଣି ॥
ଏହା କହିଣ ପଥ ବହିଯାନ୍ତି । ଗୃହରୁ ଆସିବା ଦିନ ଗଣନ୍ତି ॥
ପାଞ୍ଚଦିନ ହେଲା ବୋଲି ବିଚାର । ଆମ୍ଭଙ୍କୁ ବିହିକଲା ଏତେସର ॥
ତେଣେ ଦଇବ ଘଟସୂତ୍ର ଜାଣ । ନାଶ ହୋଇଛି ଜନକ ରାଜନ ॥
ସେହିଦେଶେ ରାଜନ ହୋଇଛି ନାଶ । ହସ୍ତୀ ଉପରେ ସୁବର୍ଣ୍ଣ କଳସ ॥
ମନ୍ତ୍ରୀଣି କରନ୍ତି ସକଳ ବୀର । କଳସ ଢାଳିବ ଯାହା ଉପର ॥
ସେହିଜନେ ରାଜା ହୋଇବେଟି ଜାଣ । ଏ ବାଞ୍ଛା ହୋଇବ ସମସ୍ତ ମନ ॥
ଏହି ସମୟରେ ସାଧବ-ଘର । ପ୍ରବେଶ ହୋଇଲ ସେହି ରାଜ୍ୟର ॥

ତାହାର କପାଳ ହୋଇଲା ଫେର । ଦୟାକଲେ ତାଙ୍କୁ ଦୟାସାଗର ।।
ହସ୍ତୀ ବୁଲୁଅଛୁ ଆରତ ହୋଇ । ସୁବର୍ଣ୍ଣ କଳସ ଢାଳିବା ପାଇଁ ।।
ସାଧବ ପୁଅ ସେହିସ୍ଥାନେ ମିଳି । ହସ୍ତୀ ଆଣି ସୁନା କଳସ ଢାଳି ।।
ସାଧବ ପୁଅ ମୁଣ୍ଡରେ ଢାଳିଲା । ହସ୍ତୀଦେଖି ତାଙ୍କୁ ହରଷ ହେଲା ।।
ସମସ୍ତ ଛିଛିକାର କରୁଥିଲେ । ସୁନା କଳସକୁ ଘେନ ଅଇଲେ ।।
ହସ୍ତୀ ଉପରେ ରଖିଲେ ବହନ । ବୋଲନ୍ତି ଏବା ରାଜାଙ୍କୁ ଭଜନ ।।
ଦଇବ କଥା କେ କରିବ ଆନ । ପୁଣି ସେ ହସ୍ତୀ ଅଇଲା ବହନ ।।
ସାଧବ ସାନପୁଅ ମୁଣ୍ଡରେ ଢାଳିଲା । ଶୂନ୍ୟରୁ ଜୟ ଶବଦ ଶୁଭିଲା ।।
ଦେବତାମାନେ ପୁଷ୍ପବୃଷ୍ଟି କଲେ । ଏହି ରାଜ୍ୟରେ ରାଜାହୁଅ ଭଲେ ।।
ପ୍ରଜାମାନେ ଦେଖି ଆନନ୍ଦ ହେଲେ । ରାଜାଙ୍କୁ ହସ୍ତୀପରେ ବସାଇଲେ ।।
ରାଣୀକୁ ଖଡ଼ଖଡ଼ିରେ ବସାଇ । ଜୟଶବଦେ ତହୁଁ ବେଗେଯାଇ ।।
ରାଜାନବରେ ପ୍ରବେଶ ହୋଇଲେ । ପାତ୍ର ମନ୍ତ୍ରୀ ସବୁ ଝୁହାର କଲେ ।।
ଅଭିଷେକ ଦ୍ରବ୍ୟ ତକ୍ଷଣେ ଆଣି । ଅଭିଷେକ କଲେ ରାଜାଙ୍କୁ ପୁଣି ।।
କନକ ଗାଦି ଗୋଟିକରେ ପୁଣ । ତର୍ନ୍ତି ହୋଇଲେ ରାଜାଧିରାଜନ ।।
ସାଧବବୋହୂ ହେଲେ ପାଟରାଣୀ । ଧର୍ମ ବୁଝାମଣା ସେକଲେ ପୁଣି ।।
ଧର୍ମରେ ରହି ପରଜା ପାଳିଲେ । ପ୍ରଜାମାନେଦେଖି ଆନନ୍ଦହେଲେ
ରହିଲେ ପ୍ରଜାମାନେ ସୁସ୍ଥ ହୋଇ । ଧନ୍ୟ ଶବଦ ସଂସାରେ ଶୁଭଇ ।।
ଏମନ୍ତେ ତର୍ନ୍ତି କତୁଦିନ ଗଲା । ଆଶ୍ୱିନମାସ ପ୍ରବେଶ ହୋଇଲା ।।
ରାଣୀ ସପିଣ ମନେ ବିଚାରଇ । ଷଠୀଦେବୀ ଓଷା କରିବ ମୁହିଁ ।।
ରାଜାଙ୍କୁ ଡାକି ସମସ୍ତ କହିଲା । ଷଠୀଦେବୀଓଷା ଆସି ହୋଇଲା ।।
ରାଣୀ ମୁଖ ବୃତ୍ତି କହେ ରାଜନ । ଓଷା କର ତୁମ୍ଭେ ଆନନ୍ଦ ମନ ।।
ଓଷା ଦ୍ରବ୍ୟମାନ ସକଳ ଆଣି । ତର୍ନ୍ତିରେ ଓଷାକଲେ ପାଟରାଣୀ ।।
ପାଞ୍ଚପାଳି ଓଷା ହୋଇଲା ପୂର୍ଣ୍ଣ । ଏଥିଉତ୍ତରେ ମନଦେଇ ଶୁଣ ।।
ଗର୍ଭବାସ ହୋଇଲେ ପାଟରାଣୀ । ଦେଖି ଆନନ୍ଦ ମନ ନୃପମଣି ।।
ଦଶମାସ ଯହୁଁ ହେଲା ସମ୍ପୂର୍ଣ୍ଣ । ଜନମ ହୋଇଲା ଏକ ନନ୍ଦନ ।।

ଗୋବର୍ଦ୍ଧନଚନ୍ଦ୍ର ନାମ ତାର ଦେଲେ । ଦିନୁ ଦିନୁ ପୁତ୍ର ବଢ଼ଇ ଭଲେ ॥
ଏହିପରି ହେଲେ ସପ୍ତକୁମର । ଦେଖି ଆନନ୍ଦ ରାଜା ନୃପବର ॥
ଅତି ଆନନ୍ଦରେ ପୁଅ ବଢ଼ିଲେ । ସପ୍ତବରଷେ ବିଦ୍ୟା ଆରମ୍ଭିଲେ ॥
ପଢ଼ିଣ ବିଦ୍ୟା ଜାଣିଲେ ସକଳ । ପୁସ୍ତକ ବଖାଣନ୍ତି ଅନର୍ଗଳ ॥
ସକଳଶାସ୍ତ୍ରେ ହୋଇଲେ ନିପୁଣ । ଷଠୀଦେବୀଙ୍କ ପ୍ରସାଦରୁ ପୁଣ ॥
ରାଜା ଭୋଗରେ ରହିଲେ ରାଜନ । ତେଣେ ସାଧବକଥା କହୁ ଶୁଣ ॥
ମହାପାତକୀ ତା କର୍ମେ ପଡ଼ିଲା । ମାନ ଅପଘାତ ମାନ ହୋଇଲା ॥
ଖେଳିଗଲେ ପୁତ୍ର ଅଇଲେନାହିଁ । ଚରିଗଲେ ଗୋରୁ ଅଇଲେନାହିଁ ॥
ଧନ ଦ୍ରବ୍ୟ ସବୁ ହୋଇଲା ନାଶ । ଦେଖି ସାଧବ ଉଡ଼ିଲା ସାହସ ॥
ଅତି ଦୁଃଖରେ କଷ୍ଟ ପାଇ ଧନ । ଅତିମଳିନ ହୋଇଲେସେ କ୍ଷୀଣ ॥
ଏହି ସମୟରେ କହୁ ବିଶେଷି । ଦୁର୍ଭିକ୍ଷ କାନ୍ତାର ପଡ଼ିଲା ଆସି ॥
ସମସ୍ତେ ବଡ଼ ନାରଖାର ହେଲେ । ଏଥିଅନ୍ତରେ କଥା ଶୁଣ ଭଲେ ॥
ମନେ ବିଚାରେ କନକ ରାଜନ । ଦୁର୍ଭିକ୍ଷ କାନ୍ତାର ହୋଇଲା ପୁଣ ॥
ରାଜରାଣୀ ବସି ବିଚାର କଲେ । ପିତାମାତା ଭ୍ରାତାଥିବେକଭଲେ ॥
କେଉଁପରି ତାଙ୍କୁ ପାଇବା ଭେଟ । ଏତେକହି ରାଜା ମନ ଉଚ୍ଚାଟ ॥
ପାତ୍ର ମନ୍ତ୍ରୀ ସବୁ ଡ଼କାଇ ଆଣି । ବିଚାର କରୁଛନ୍ତି ନୃପମଣି ॥
ଦୁର୍ଭିକ୍ଷକାନ୍ତାର ଆସି ପଡ଼ିଲା । ଆମ୍ଭର ଧର୍ମ କିଛୁ ନ ରହିଲା ॥
ଗୋଟିଏ ପୁଷ୍କରଣୀ ଖୋଳାଇବା । ଯାହାକହିବେ ତାହା ମୂଲ୍ୟଦେବା ॥
ଗାଣ୍ଡ୍ରି ଆଏ ମାଟି ଯେହୁ କାଢ଼ିବ । ଗଣ୍ଡାଏ କଉଡ଼ି ସେ ଘେନଯିବ ॥
ଗଣ୍ଡାକଉଡ଼ି ହେବ ପୋଖରୀ ନାମ । ଶୁଣିସନ୍ତୋଷ ହୋଇଲେ ରାଜନ ॥
ପୋଖରୀକୁ ବେଗେ ଆରମ୍ଭ କଲେ । ମୂଲିଆଲଗାଇ ଖୋଳ ବୋଇଲେ
ମାତାପିତାଙ୍କ ଭେଟହେବା ପାଇଁ । ପୋଖରୀଖୋଳାଇଲେ ନୃପସାଇଁ ॥
ଏକଥା ଲୋକେ ନଜାଣନ୍ତି କେହି । ନାନାଦେଶ ଲୋକେ ଖୋଳନ୍ତିରହି
ପିତାମାତାଙ୍କୁ ପାଇବାକୁ ଭେଟ । ରାଜନ ଜଗି ବସିଥାନ୍ତି ବାଟ ॥
ତେଣେ ସାଧବ ଭୋଗଇ ଅବସ୍ଥା । ଶୁଣିପାଇଲା ସେ ପୋଖରୀକଥା ॥

କୁଟୁମ୍ବଯାକ ସମସ୍ତ ବସାଇ । ପୋଖରୀଖୋଳିବା ସ୍ଥଳଦେଖାଇ॥
ପୋଖରୀଖୋଳଣ ପୋଷିବା ପେଟ । ସମସ୍ତେଶୁଣି ହୋଇଲେ ଜଗାଟ॥
ଘରୁ ବାହାରିଣ ଗଲେ ମଧୀରେ । ପ୍ରବେଶହେଲେ ଜନକ ରାଜ୍ୟରେ॥
ପୋଖରୀଖୋଳାକୂଳରେ ବସିଲେ । ରାଜାକୁ ସ୍ୱର୍ଣ୍ଣ ବଚନ ବୋଇଲେ॥
ବୋଲନ୍ତି ପୋଖରୀ ଆମ୍ଭେଖୋଳିବୁ । ତୁମ୍ଭଦାନାଖାଇ ପେଟପୋଷିବୁ॥
ଏମନ୍ତ ବଚନ ଯହୁଁ ଶୁଣିଲେ । ମାତାପିତା ବୋଲି ତହୁଁ ଚିହ୍ନିଲେ
ମାତାପିତାଙ୍କୁ କହନ୍ତି ସଂଧ୍ୟରେ । ତୁମ୍ଭେ ବସିଥାଅ ବୃକ୍ଷମୂଳରେ ॥
ଆଜ୍ଞସମସ୍ତେ ଖୋଳନ୍ତୁ ପୋଖରୀ । ଏମନ୍ତକହି ରାଜାଗଲେ ଫେରି ॥
ନଗରେଯାଇ ପ୍ରବେଶ ହୋଇଲେ । ଧନ୍ୟଧଇଦ ଭେଟାଇଲା ଭଲେ ॥
ତହୁଁ ରାଜନ ବେଗେ ଚଳିଯାଇ । ଧୋବା ଭଣ୍ଡାରଆଣିଲେଡକାଇ ॥
ମାତାପିତାଙ୍କୁ ସବୁ ଚିହ୍ନାଇଲେ । ଏହାଙ୍କୁ ନିର୍ମଳକର ବୋଇଲେ ॥
ଜୀଅସ୍ତ ଚୋଳାଇ ନିର୍ମାଣ କରି । ମାତାପିତାଙ୍କ ପାଶକୁ ହକାରି ॥
ବୋଇଲେ ଏଘରେସୁଷ୍ଠୁରେ ରୁହ । ତା ଦେଖି କମ୍ପଇ ସାଧବଦେହ॥
ନିର୍ଭୟେ ରାଜନ ହସି କହଇ । ଏଘରେରୁହ ତୁମ୍ଭେସୁସ୍ଥ ହୋଇ ॥
ସଜଳଦ୍ରବ୍ୟପେ ଘରେ ପୂରଇ । ସମସ୍ତଙ୍କୁ ରାଜା ରଖିଲେ ନେଇ ॥
ଏଥୁଅନ୍ତେ ଶୁଣ ପୂର୍ବ ରହସ୍ୟ । ଯୋଗେହୋଇଅଛୁ ଆଶ୍ୱିନମାସ॥
ଷଠୀଦେବୀଙ୍କ ବୁଧବାର ଓଷା । ଆସି ପଡ଼ିଲା ସେ ଦିନର ନିଶା ॥
ରାଣୀନବରରେ ଓଷା ପୂଜଇ । ଆନନ୍ଦେ ହୁଳହୁଳିମାନ ଦେଇ ॥
ଆଦ୍ଭୁତ କଥାଏ ଥିଲା ମନରେ । କନକଚମ୍ପା ନବର ଭିତରେ ॥
ଚୋଳନ୍ତି ପୂଅ ଆଙ୍କୁଡ଼ ବଡ଼ାଇ । ପୁତ୍ରଜଧର ମୁଖେଗୀତ ଗାଇ ॥
ଓଷାପୂଜା କଲେକେତେ କୌତୁକ । ଗହଳେଶୁଭି ନାହିଁ ଡାକହାକ ॥
ଏହି ସମୟେ ସାଧବାଣୀ ବୁଢ଼ୀ । ଓଷାଶୁଣି ହୋଏ କୋଡ଼କରୁଡ଼ି॥
ମୋହରଘରେ ସାନବୋହୂ ଥିଲା । ଏ ବୁଧବାର ଓଷା କରୁଥିଲା ॥
ତାଲାଗି ସମ୍ପତ୍ତିଥିଲା ମୋହର । ତା ବିନୁ ସବୁହେଲା ନାରଖାର॥
ଏହା କହିଣ ବୁଢ଼ୀ କାନ୍ଦୁଥିଲା । ପୋଇଲି ତାହାରକଥା ଶୁଣିଲା॥

ରାଣୀଙ୍କ ଆଗରେ କହିଲା ଯାଇ । ତା ଶୁଣି ରାଣୀ ତାହାକୁ ଡକାଇ॥
ରାଜରାଣୀ ଦୁହେଁ ବିସ୍ମୟ ହେଲେ । ଶୁଆର ନେଇ ଘେନଅଧ ଭଲେ॥
ତା ଶୁଣି ଡଗର ତତକ୍ଷଣ ଗଲା । ସାଧବ ବୁଢ଼ୀକି ଘେନ ଆଇଲା ॥
ଦେଖିଣ ବୁଢ଼ୀ ମନେ ବିସ୍ମୟଇ । ଏ ଓଷା ମୋ ସାନବୋହୂ କରଇ
ଏହି ସମୟରେ ଉଠଲେ ରାଣୀ । ଶାଶୁଙ୍କୁ ନମସ୍କାର କଲେ ପୁଣି ॥
ବୁଢ଼ୀ ତାହାଦେଖି କାତର ହେଲା । ରାଜା ରାଣୀଙ୍କୁ ବୁଢ଼ୀ ପଚାରିଲା ॥
କାହିଁକି ମତେ କରୁଛ ଏମନ୍ତ । ରାଜା କହିଲେ ସବୁ ଆଦ୍ୟପ୍ରାନ୍ତ॥
ସବୁକଥା ବୁଢ଼ୀ କର୍ଣ୍ଣେ ଶୁଣିଲା । କ୍ରୋଧଭରରେ ବୁଢ଼ୀ କାନ୍ଦି ଉଠିଲା
ତାହାଦେଖି ରାଜା ରାଣୀ କାନ୍ଦନ୍ତି । ପରିବାର ଲୋକେ ଜ୍ଞାନ କରନ୍ତି ॥
ବାପ ଭାଇ ବୋହୂ ଡକାଇନେଇ । ଭୁଣ୍ଡ ହୋଇଲେ ଚହ୍ଲାଚହ୍ଲି ହୋଇ
ଯେଯାହା ସବୁ ଚହ୍ଲାଚହ୍ଲି ହେଲେ । ରଡ଼ଦାଜେ ପୃଥିବୀ କମ୍ପାଇଲେ ॥
ବୁଢ଼ାବୁଢ଼ୀଙ୍କର ସପତ ନାତି । ଆଙ୍କୁଡ଼ି ବଢ଼ାଇ ଫୁଲ ତୋଳନ୍ତି ॥
ବହୁତ ଆଶ୍ୱାସି ତାହା ବୋଲେ । ନାତିମାନଙ୍କୁ କୋଳେ ବସାଇଲେ
ରାଣୀ ଆନନ୍ଦେ ଏ ଓଷା ପୂଜିଲେ । ଏହିସମୟେ କେତେ କଥାହେଲେ
ଷଠୀଦେବୀଙ୍କ ଓଷା ପୂଜା ସାରି । ସମସ୍ତେ ବସିଲେ ଭୋଜନ କରି ॥
ଭୋଜନ ସାରି ନଣି ପହୁଡ଼ିଲେ । ସେ ରାଜ୍ୟଲୋକେ ସମସ୍ତେ ଜାଣିଲେ
ଦେହେବଡପଧାନ ବୁଢ଼ା ହୋଇଲେ । ବୁଢ଼ୀବେଦେହେବ ପଧାଣୀ ହେଲେ
ଭାଇମାନେ ହେଲେ ଗାଁ ପଧାନ । ବୋହୂମାନେ ପଧାଣୀ ଯେଜାଣ
ଯେଯାହା ସୁଖେ ସୁଖରେ ରହିଲେ । ରାଜପାଟ କଥା ରାଜା ବୁଝିଲେ ॥
ରାଣୀକି ହୋଇଲା ସବୁ ପ୍ରାପତ । ଷଠୀଦେବୀଙ୍କ ଯେଣୁ କଲା ବ୍ରତ ॥
ପୁତ୍ର ସମ୍ପଦ ରାଜପୁତ୍ର ପାଇ । ବାଞ୍ଛାକଲା ଫଳ ସବୁ ମିଳଇ ॥
ଅର୍ଘ୍ୟଦେଇ ଯାହା ମାଗିଣ ଥିଲା । ବିଧାତା ଆଣି ସବୁ ତାକୁ ଦେଲା ॥
ତେଣୁ ସେ ମନରେ କଲା ନିଶ୍ଚିତ । ସବୁ କଥାମାନ ହେଲା ପ୍ରାପତ ॥
ଏହା ଭାବ ସବୁ ନିଶ୍ଚିତ କରି । ପୁତ୍ର ସମ୍ପଦ ପାଇବ ନିକରି ॥
ଏ କଥା ଶୁଣି ଯେ ହାହା କରିବ । ହାସ୍ୟ କଲେ ନିଶ୍ଚେ ଦଣ୍ଡପାଇବ॥

ଦେବକନ୍ୟାଙ୍କର ଏ ଅଟେ ବାଣୀ । ଶୁଣି କହିଲା ନେତାଇ ଧୋବଣୀ
ପୂର୍ବରୁ ହୋଇଥିଲା ଏକଥା । ଶ୍ରୀଗୁରୁ ଆଜ୍ଞାରୁ କଲି ମୁଁ ପୋଥା
ସୁଜନମାନେ ନକରିବ ହାସ୍ୟ । ବୁଝିଲେ ଅଛୁଟି ପରମ ରସ ॥
ଜ୍ୟୋତିଷ ମନୁ ଖଣ୍ଡରନ୍ଧ କହି । ଶ୍ରୀଗୁରୁ ଚରଣ ପଙ୍କଜେ ଧ୍ୟାୟି ॥
ଗୁରୁ ପାଦଧ୍ୟାୟି ମୋ ଜୀବଯାଉ । ସୁଜନମାନେ ଏହି ଆଜ୍ଞା ଦେଉ
ଢେଙ୍କାନାଳ ରାଜ୍ୟ ଅଟେ ମୋହର । ଗନ୍ଧିଆ ଗ୍ରାମରେ ଜନ୍ମ ମୋହର
ଲେଖିଲି ଶିବ ଶିବ ଧ୍ୟାୟି କରି । ଏପାପ ପଙ୍କରୁ ନେବେ ଉଦ୍ଧରି ॥

ଇତି ଶ୍ରୀ ଖୁଦୁରୁକୁଣୀ ଓଷାକଥା ସମ୍ପୂର୍ଣ୍ଣ ।



ମୁଦ୍ରାକର—ପରମେଶ୍ୱର ପ୍ରେସ, ଅଲଣାବଜାର, କଟକ-୨.

